# ହୁଲୁହୁଲୁ ଅସୁର ଓ ଅନ୍ୟାନ୍ୟ କାହାଣୀ

ଦାଶ ବେନହୁର



Digitized by srujanika@gmail.com

# ହୁଲୁହୁଲୁ ଅସୁର ଓ ଅନ୍ୟାନ୍ୟ କାହାଣୀ
ଲେଖକ: **ଦାଶ ବେନହୁର**

ପ୍ରକାଶକ: ଆମ ଓଡ଼ିଶା, ୪ ଆର୍ ୧/୨,
ୟୁନିଟ୍-୩, ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ: ଡୁଡୁଲି ପ୍ରୋସେସ୍ ଆଣ୍ଡ୍ ଅଫ୍‌ସେଟ୍
୨୩୧, ବାପୁଜୀ ନଗର, ଭୁବନେଶ୍ୱର

ପ୍ରଥମ ପ୍ରକାଶ: ଅଗଷ୍ଟ, ୨୦୧୩

© ଆମ ଓଡ଼ିଶା

ଅଳଂକରଣ: ମଣ୍ଟୁଲ୍

ମୂଲ୍ୟ: ଟ.୩୫/-

**HULU HULU ASURA O' ANYANYA KAHANI**
Author: **Dash Benhur**

Publisher: Aama Odisha,
4R 1/2, Unit-3, Bhubaneswar-751001
e-mail: aamaodisha@gmail.com

Printed at: Duduly Process and Offset
231, Bapuji Nagar, Bhubaneswar-9

First edition: August, 2013

Illustrator: Mantul

Price: Rs.35/-

ISBN 978-81-89436-68-1

*Digitized by srujanika@gmail.com*

# ମୁଖବନ୍ଧ

ପିଲାମାନଙ୍କୁ ଗପ ଖୁବ୍ ଭଲ ଲାଗେ । ବିଶେଷ କରି ଯେଉଁ ଗପରେ ସେମାନଙ୍କ ଭାବନାର କଥା ଥାଏ, ତାହା ତାଙ୍କୁ ଅଧିକ ଟାଣେ । ନିଜ ଭାବନା, ନିଜ ପରିସର ସହିତ ସେମାନେ ଅନେକ ଅଜଣା କଥାକୁ ମଧ୍ୟ ପସନ୍ଦ କରନ୍ତି । ଅସୁରଟିଏ କିଏ କ'ଣ ସତରେ ଦେଖିଛି? ସବୁ କଳ୍ପନା, ସବୁ ଜାଲବୁଣିଲା ଭଳି ଛନ୍ଦାଛନ୍ଦି କଥା । ଏ ଛୋଟ ଗପ ବହିଟିରେ ଆଜିକାଲିକା ବାସ୍ତବ ଜୀବନର ବିଷୟ ଯେମିତି ଅଛି, ସେମିତି ବି ଅଛି ନାନା କଳ୍ପନାର ଶବ୍ଦ-ବଖାଣ । ହୁଲୁହୁଲୁ ଅସୁର ବିଷୟରେ ପଢ଼ି ଭାବିବାକୁ ଯେମିତି ଆନନ୍ଦ ଲାଗେ, ସେମିତି ଖୁଜୁବୁଜିଆ ବନା ସମ୍ପର୍କରେ ପୃଷ୍ଠା ଗଡ଼ୋଉ ଗଡ଼ୋଉ ଭାରି ହସମାଡ଼େ । ଯେଉଁ ଗପ ଆମକୁ ଭାବିବା ପାଇଁ ଓ ମନଖୁସି କରିବା ପାଇଁ ଖୋରାକ ନ ଯୋଗାଇଲା, ସେ କି ବା ଗପ?

ଏ ଛୋଟ ବହିଟିରେ ୧୦ଟି ମନଲୋଭା କାହାଣୀ ଅଛି । ମୋର ଆଶା, ପିଲାମାନେ ସେ ସବୁ ପଢ଼ି ଆନନ୍ଦ ପାଇବେ ।

**ସୌମ୍ୟରଂଜନ ପଟ୍ଟନାୟକ**

Digitized by srujanika@gmail.com

# ଏଥିରେ ଅଛି



Digitized by srujanika@gmail.com

ଗୋଟେ ଅସୁର ଥାଏ । ତାଳଗଛ ପରି ଡେଙ୍ଗା, ଅନ୍ଧାର ପରି କଳା । ବାଳଗୁଡ଼ାକ ଖଡ଼ିକା ପରି ଠିଆଠିଆ । ତା'କୁ ସମସ୍ତେ ଡାକନ୍ତି ହୁଲୁହୁଲୁ ।
ଆକାଶରେ ଉଡ଼ିଯାଉଥିବା ଚଢ଼େଇ ବି ତା'କୁ ଦେଖି ନିଜ ଭିତରେ କଥା ହୁଅନ୍ତି- ''ହେଇଟି, ହୁଲୁହୁଲୁ ଯାଉଚି ।''
ଅସୁର ହେଲେ କ'ଣ ହେବ, ସେ ବଡ଼ ଦୟାଳୁ । କେବେ କାହାକୁ ଜୀବନରେ ମାରେ ନାଇଁ କି ମାଛ ମାଉଁସ ଖାଏ ନାଇଁ । ସବୁବେଳେ ଫଳମୂଳ ଖାଇ ରହେ । ତା'ର ବା ଅଭାବ କ'ଣ? ବଣରେ କୋଉ କଥା ନାହିଁ? ହାତ ବଢ଼େଇ ଦେଲେ ନଡ଼ିଆ, ତାଳ; ନଇଁପଡ଼ିଲେ କଖାରୁ, କାକୁଡ଼ି । ସବୁ ଫଳେ ସେଠି । ସେମିତି କ'ଣ ଅସୁବିଧା ହେଲେ ସେ କନ୍ଦା, କଡ଼ବା କି ମାଟିଆଳୁ ଖାଇ ରହେ ।





Digitized by srujanika@gmail.com

ଜଙ୍ଗଲରେ ହୁଲୁହୁଲୁ ସିନା କାହାକୁ ମାରି ଖାଏନି, ତା'କୁ କିନ୍ତୁ ସମସ୍ତଙ୍କର ପ୍ରାଣେ ଭୟ । କିଏ ଗଣ୍ଡଗୋଳ କରୁଥିବାର ଦେଖିଲେ ସେ ଚଟ୍‌କିନା ପଛଆଡ଼ୁ ଧରିପକାଏ । ଆଚ୍ଛାକରି କାନକୁ ମୋଡ଼େ । ବାଘ, ସିଂହ, ଭାଲୁ, ତା'କୁ ଦେଖିଲେ ବାଟ ଭାଙ୍ଗି ପଳାନ୍ତି ।

ଥରେ ଗୋଟେ ଦନ୍ତାହାତୀ କ'ଣ ବଦମାସି କରୁଥିଲା । ହୁଲୁହୁଲୁ ତା'କୁ ଧରି ପକେଇ ଜୋର୍‌ରେ କାନକୁ ମୋଡ଼ିଦେଲା । ଦନ୍ତା କି ଆଉ ସେଠି ରହେ? ଯା' ଉଡ଼ନ୍ ଛୁ ।

ସବୁ ପଶୁମାନଙ୍କ ଭିତରେ ସେ ଠେକୁଆମାନଙ୍କୁ ସବୁଠୁ ଅଧିକ ଭଲପାଏ । ଠେକୁଆଟିଏ ଦେଖିଲେ ଚୁପ୍‌କରି ଧରିଆଣେ । ଗେଲ କରେ, ଥାପୁଡ଼ା ଥାପୁଡ଼ି କରେ, ଉପରକୁ ଫୋପାଡ଼ି ଧରିପକେଇ ଖେଳେ । ପାପୁଲିରେ ଥୋଇ କାନକୁ ସଲସଲ କରେ । କେତେବେଳକେ ଠେକୁଆ ଘୁମେଇଲେ ତା'କୁ ତଳେ ଛାଡ଼ିଦିଏ ।

ଏମିତି କେତେ ଦିନ କେତେ ମାସ ଗଲା ।

ହଠାତ୍ ଜଣାପଡ଼ିଲା ଯେ ଜଙ୍ଗଲରେ ଆଉ ଠେକୁଆ ନାହାନ୍ତି । ବଡ଼ ଆଶ୍ଚର୍ଯ୍ୟ କଥା? କିରେ, ଏତେ ଠେକୁଆ ଥିଲେ ଗଲେ କୁଆଡ଼େ? ହୁଲୁହୁଲୁ ବ୍ୟସ୍ତ ହେଲା । କାହାକୁ ପଚାରିବ? ନିଶ୍ଚେ କିଏ ଗୋଟିଗୋଟି କରି ମାରି ଖାଇଚି ।

ସେ ବାଘର କାନ ଧରି ପଚାରିଲା- ''ତୁ ଖାଇଚୁ? ବାଘ କହିଲା, ''ନାଇଁ ଆଜ୍ଞା ।''

ଭାଲୁର ଚୁଟି ଝିଙ୍କି କହିଲା, ''ବଦମାସ୍ ତୁ ଖାଇଚୁ ନିଶ୍ଚେ ।'' କାନ୍ଦି ପକେଇଲା ଭାଲୁ । ସୁଁ ସୁଁ ହୋଇ କହିଲା, ''ସତ କହୁଚି ହଜୁର୍ ମୁଁ ଖାଇନି ।''

ସେଇଠୁ ହୁଲୁହୁଲୁ ସିଂହକୁ ଡାକିଲା । ତା'କେଶର ଧରି କହିଲା- ''ଇଏ ସବୁ ତୋ' କାମ । କହ, ଠେକୁଆଯାକ କୁଆଡ଼େ ଗଲେ? ତୁ ଅଲବତ୍ ଖାଇଚୁ ।''

ସିଏ ବି ଗାଡୁରୁ ମାଡୁରୁ ହେଇ ଜଣେଇଲା- ''ବିଶ୍ୱାସ କରନ୍ତୁ, ମୁଁ ଖାଇନି ।''

ବଡ଼ ବିଚିତ୍ର କଥା ହେଲା । କୁଆଡ଼େ ଗଲେ ସବୁ ଠେକୁଆ?

ଏତିକିବେଳେ ଗୋଟେ ବଡ଼ ପଥର ଉପରେ ବସିଥିଲା ହନୁମାଙ୍କଡ଼ । ସେ କହିଲା, ''ମାହାପ୍ରୁ, ଠେକୁଆଙ୍କୁ କେହି ମାରିନାହାନ୍ତି । ସେମାନେ ଆପଣଙ୍କ ଆଦର ପାଇ ଆପେ ମରିଛନ୍ତି ।''

ରାଗିଗଲା ହୁଲୁହୁଲୁ । କହିଲା, ''କ'ଣ ଥଟ୍ଟା କରୁଛୁ? ଦେଖିବୁ ଏଇଲେ? ଆଦର ପାଇଲେ କିଏ କ'ଣ ମରେ?''

ହନୁମାଙ୍କଡ଼ ଉତ୍ତର ଦେଲା,''ବୁଝିବା ହୁଅନ୍ତୁ ଆଜ୍ଞା । ଯେତେ ହେଲେ ଆପଣ ଅସୁର । ଠେକୁଆମାନେ ବଡ଼ କୋମଳ ଜୀବ । ଆପଣ ସିନା ଭାବନ୍ତି ଯେ ଆଦର କରୁଛନ୍ତି, ମାତ୍ର ଥାପୁଡ଼ା ଥାପୁଡ଼ି, ଫୋପଡ଼ା ଫୋପଡ଼ିରେ ସେମାନେ ନୟାନ୍ତ ହୋଇଯାଆନ୍ତି । ତଳେ ଛାଡ଼ିଲା ବେଳକୁ ଅବସ୍ଥା ଅଠାଟିକି । ଡର ଯୋଗୁଁ କିଛି କହିପାରନ୍ତି ନାହିଁ । ଯାହାର ଆୟୁଷ ଥାଏ ସେ ଦୁଇଚାରିଦିନ ଛୋଟା କେମ୍ପା ହୋଇ ବଞ୍ଚେ, ପରେ ସରଗ ରାଇଜକୁ ବାଟକାଟେ । ଏଇମିତି ହେଇ ସବୁ ଠେକୁଆ ମରିଛନ୍ତି ଆଜ୍ଞା ।''





Digitized by srujanika@gmail.com

ହୁଲୁହୁଲୁ କାବାକାଠ । କ'ଣ ଆଉ କହିବ? ତା' ଯୋଗୁଁ ଠେକୁଆମାନେ ମରିଥିବା କଥା ଶୁଣି ସେ ଭେଁ ଭେଁ କାନ୍ଦିବାରେ ଲାଗିଲା ।

କେହି ଦିନେ ତାକୁ କାନ୍ଦିବାର ଦେଖି ନ ଥିଲେ । ଏବେ ସାରା ବଣରାଇଜରେ କାନ୍ଦର ରୋଳ ଉଠିଲା । ଆକାଶରୁ ବରଷା ଝରିଗଲା ଝରଝର ହୋଇ ।

ପଶୁ ପକ୍ଷୀ, ଚଢ଼େଇ ଚିରଗୁଣୀ, ଗଛ ପତର କହି ଉଠିଲେ-''ଆହା, ଏ ସାରା ସଂସାରରେ ଏମିତିକା ଦୟାଳୁ ଅସୁର ଆଉ କେଉଁଠି ନ ଥିବେ ।''

ହୁଲୁହୁଲୁ କିନ୍ତୁ କାନ୍ଦୁଥାଏ ଛୋଟ ପିଲାଟିଏ ପରି ।





Digitized by srujanika@gmail.com

# ରୁପା ଚଢ଼େଇ

ଅନେକ ଦିନ ତଳର କଥା । ଗୋଟିଏ ଗାଁରେ ଥାଏ ଗୋଟିଏ ଶିକାରୀ । ତା'ର କାମ ହେଲା ବଣରୁ ଜାତିଜାତିକା ଚଢ଼େଇ ଧରିଆଣି ବିକିବା ।

ଦିନେ ସେ ଗୋଟେ ଅଦ୍‌ଭୁତ ଚଢ଼େଇ ଦେଖିଲା । ରଙ୍ଗ ଚାନ୍ଦି ରୁପା ପରି ଚକ୍ ଚକ୍, ଥଣ୍ଟ ନାଲି, ବେକରେ ସୁନେଲି ବଳା । ତା'କୁ ଦେଖି ଶିକାରୀର ଲୋଭ ବଢ଼ିଲା । ଭାବିଲା- ୟାକୁ ଧରିନେଇ ବିକିଲେ ଢେର୍ ପଇସା ମିଳିବ । ଫାଶ ବସେଇ ଯତ୍ନରେ ଧରିବାକୁ ପଡ଼ିବ, ଯେମିତି ପରଗୁଡ଼ିକ ନଷ୍ଟ ନ ହେବ ।

ଏତିକିବେଳେ ଚଢ଼େଇ ଗୀତ ଗାଇବାକୁ ଆରମ୍ଭ କରିଦେଲା । ସେ ଜାଣି ନ ଥାଏ ଯେ ଶିକାରୀ ଗଛମୂଳରେ ଠିକ୍ ତା'ରି ତଳେ ଚାହିଁରହିଚି । ଗୀତ ସରିବାକ୍ଷଣି କ'ଣ ଗୋଟାଏ ଖସିପଡ଼ିଲା ଶିକାରୀ ମୁଣ୍ଡ ଉପରେ । ଦେଖିଲାବେଳକୁ ଗୋଟେ ମୋତି ।



Digitized by srujanika@gmail.com



ବିଶ୍ୱାସ ହେଲାନି ଶିକାରୀର । ଚଢ଼େଇଟି ଗୀତ ଗାଇଲେ ତା' ପାଟିରୁ ମୋତି ଝରୁଚି ।
ବଣିଆ ପାଖରେ ବିକିବାରୁ ଶିକାରୀ ବହୁତ ପଇସା ପାଇଲା । ଏବେ ରୁପା ଚଢ଼େଇଟିକୁ ଧରିବାକୁ ଲୋଭ ବଢ଼ିଲା ତା'ର । ପରଦିନ ହିଁ ଫାଶ ବସେଇ ସେ ଧରିନେଲା ତା'କୁ । ଭାବିଲା, ''ବିକିବା ଠିକ୍ ହେବନି । ପ୍ରତିଦିନ ତା'ଠାରୁ ମୋତିଟିଏ ଲେଖାଏଁ ପାଇଲେ ଅଳ୍ପଦିନରେ ମୁଁ ଧନୀ ହୋଇଯିବି ।'' ଯତ୍ନ କରି ଏବେ ସେ ରୁପା ଚଢ଼େଇଟିକୁ ଗୋଟିଏ ପଞ୍ଜୁରିରେ ରଖିଲା । ଅପେକ୍ଷା କରିଥାଏ, ଗୀତ ଗାଇଲେ ମୋତି ବାହାରିବ ।
ହେଲେ ସେ ଗାଉଛି କେଉଁଠି? ସବୁବେଳେ ମନମାରି ବସିଲା ।
ଶିକାରୀ ଏବେ କରିବ କ'ଣ? କ'ଣ କଲେ ଚଢ଼େଇ ଗୀତ ଗାଇବ? ରୁପା ଚଢ଼େଇ କିନ୍ତୁ ମୋଟେ ଗୀତ ଗାଇଲାନି । ଶିକାରୀର ଭୟ ହେଲା କାଳେ ମରିଯିବ ଯଦି? ନା ଏପଟର ହେବ, ନା ସେ ପଟର ।
ଶେଷରେ ସେ ତା'କୁ ଗୋଟିଏ ଧନୀ ଲୋକକୁ ବିକିଦେଲା ।
ଧନୀ ଲୋକଟିର ଥାଏ ଗୋଟିଏ ଛୋଟ ଝିଅ । ସେ ଜୀବଜନ୍ତୁଙ୍କୁ ଖୁବ୍ ଭଲପାଏ । ରୁପା ଚଢ଼େଇଟିକୁ ଦେଖି ଖୁସିରେ ନାଚି ଉଠିଲା । ଚଢ଼େଇଟି କିନ୍ତୁ ମନମାରି ପଞ୍ଜୁରି ଭିତରେ ବସିଥାଏ ।
ଝିଅଟି ଜାଣିପାରିଲା ଯେ ତା'ର ମନ ଭଲନାହିଁ । ସେ କେତେ କ'ଣ ଫଳମୂଳ ଆଣି ଦେଲା । ହେଲେ ରୁପା ଚଢ଼େଇ ଚାହିଁଲାନି କି ଛୁଇଁଲାନି ।
ଏ କଥା ଦେଖି ଛୋଟ ଝିଅଟିର ମନ ଦୁଃଖହେଲା । ସେ କାହାକୁ କିଛି ନ କହି ଚୁପ୍‌କିନା ପଞ୍ଜୁରିର ଦୁଆର ଖୋଲିଦେଲା ।
ରୁପା ଚଢ଼େଇ ବାହାରି ଆସିଲା ପଞ୍ଜୁରିରୁ । ଉଡ଼ିଯାଇ ଝରକା ପାଖରେ ବସି ଗାଇବାକୁ ଲାଗିଲା । ଗୀତ ଯେମିତି ସରିଚି ଟୁପ୍‌କିନା ତା' ପାଟିରୁ ଖସି ପଡ଼ିଲା ମୋତିଟିଏ । ମୋତିଟିକୁ ଗୋଟେଇ ଧରିଲା ଛୋଟ ଝିଅ ।
ଏବେ ରୁପା ଚଢ଼େଇ ଫୁର୍ କରି ଉଡ଼ିଗଲା ବାହାରକୁ । ଉଡ଼ିଉଡ଼ି ଚାଲିଗଲା ବଣ ପାହାଡ଼ ଆଡ଼େ । ଛୋଟ ଝିଅଟି ଚାହିଁ ରହିଥାଏ ସେଇ ଆଡ଼କୁ ।
ଝିଅର ବାପା ମୋତିଟିକୁ ନେଇ ଗୋଟିଏ ମୁଦି ଗଢ଼େଇଦେଲେ ଝିଅ ପାଇଁ ।
ପ୍ରତିଦିନ ସକାଳେ ନିଦ ଭାଙ୍ଗିଲାବେଳକୁ ଝିଅଟିକୁ ଲାଗେ ରୁପା ଚଢ଼େଇଟି କାହିଁ ଦୂରରେ ବସି ଗୀତ ଗାଉଚି କେଉଁଠି ।



Digitized by srujanika@gmail.com



# ସପନ ରାଇଜ କଥା

ଥରେ ବବ୍‌ଲୁ ଯାଇଥିଲା ଅଜାଘର ଗାଆଁକୁ ।

ଥରେ କ'ଣ, ଫି' ବରଷ ଖରା ଛୁଟି ହେଲେ ବବ୍‌ଲୁ ତା' ବୋଉ ସହିତ ଯାଏ ଅଜାଘର । ଅଜାଘର ଗାଆଁରେ ଅଛି ଗୋଟେ ବଡ଼ ପୋଖରୀ । ତା' ପାଖକୁ ଆମ୍ବତୋଟା । ଖୁବ୍ ମଜା ହୁଏ ଅଜାଘରେ ।

ସବୁଠୁ ଖୁସିର କଥା ହେଲା, ଖରାବେଳେ ପାଖରେ ଶୁଆଇ ଅଜା ଗପ କହନ୍ତି । ଅତୀତ କାଳର ଗପ, ତା'ଙ୍କ ପିଲାଦିନର ଗପ, ପୁଣି ବାଘଭାଲୁଙ୍କର କାହାଣୀ, ପୁରାଣ କାହାଣୀ ।

ବବ୍‌ଲୁ ଆଁ କରି ଗପ ସବୁ ଶୁଣେ ।

ଦିନେ ଦିନେ ଗପ କହୁ କହୁ ଅଜା ଘୁଙ୍ଗୁଡ଼ି ମାରି ଶୋଇପଡ଼ନ୍ତି । ଅଧାରେ ରହିଯାଏ ଗପ । ବଲବଲ ହୋଇ ବବ୍‌ଲୁ ଖାଲି ଚାହିଁ ରହେ । ଝରକା କବାଟ ଆଉଜା ଘର ଭିତରେ ପଡ଼ି ରହେ ଅଜାଙ୍କର ନିଦ ଭାଙ୍ଗିବା ଯାଏଁ ।


Digitized by srujanika@gmail.com

ଦିନେ ବବ୍‌ଲୁ ଆଉ ସମ୍ଭାଳି ପାରିଲାନି । କହିଦେଲା ଅଜାଙ୍କୁ- "ତମେ ତ ଖାଲି ଶୋଇପଡ଼ୁଚ? ଦିନବେଳେ କ'ଣ ଶୋଇବା କଥା?"

ଅଜା, କ'ଣ ଟିକେ ଭାବିଲେ । ତା'ପରେ କହିଲେ, "ଆରେ ନାଇଁ ନାଇଁ, ମୁଁ କ'ଣ ସତରେ ଶୋଇଥିଲି? ବୁଲିଯାଇଥିଲି ସପନ ରାଇଜ । ସେଠି ମୁନିଋଷିମାନେ ଅଛନ୍ତି । ମୁଁ ସେମାନଙ୍କୁ ପଚରାପଚରି କରିବାକୁ ଯାଇଥିଲି ।"

ବବ୍‌ଲୁ ଆଉ କ'ଣ କହିବ? ଚୁପ୍ ରହିଲା ଅଜାଙ୍କ କଥା ଶୁଣି ।

ତା'ପର ଦିନ ଅଜା ହୁସିଆର ହୋଇଗଲେ । ଭାବିଲେ ଆଜି ଆଉ ନ ଶୋଇ ବବ୍‌ଲୁକୁ ଗୋଟେ ମଜାଦାର ଗପ କହିବେ ।

ଦ୍ୱିପ୍ରହର ହେଲା । ଦହି ପଖାଳ, ଶାଗ, ବଡ଼ିଚୂରା, ମାଛ ଭଜା ଖାଇ ବବ୍‌ଲୁ ଅଜାଙ୍କ ପାଖରେ ଶୋଇ ଗପ ଶୁଣିଲା । ଅଜା ମାତି ଯାଇଥାନ୍ତି ଗପ କହିବାରେ । କିନ୍ତୁ ଏ କ'ଣ, ବବ୍‌ଲୁ ଶୋଇପଡ଼ିଲାଣି । ଅଜା, ହଲେଇଦେଲେ ତା'କୁ । କହିଲେ, "କିରେ ତୁ କ'ଣ ଗପ ନ ଶୁଣି ଶୋଇପଡ଼ୁଚୁ?"

ବବ୍‌ଲୁ ଉଠିପଡ଼ି କହିଲା, "ନାଇଁ ଅଜା, ମୁଁ କ'ଣ ଶୋଇଥିଲି କି? ମୁଁ ସପନ ରାଇଜ ଆଡ଼େ ବୁଲି ଯାଇଥିଲି । ସେଠି ମୁନିଋଷିଙ୍କ ସହ ଦେଖାହେଲା ।"

ଅଜା ପଚାରିଲେ, "ତାଙ୍କୁ କ'ଣ କହିଲୁ?"

ବବ୍‌ଲୁ ଚଟାପଟ୍ ଉତ୍ତରଦେଲା- "ମୁଁ ପଚାରିଲି, "ଆମ ଅଜା, କାଲି ଆପଣମାନଙ୍କ ପାଖକୁ ଆସିଥିଲେ କି? ସେମାନେ କିନ୍ତୁ ମନା କଲେ ।"

ଏଥର ଅଜା ହସି ହସି କହିଲେ, "ହଉ ହେଲା, ମୋର ଭୁଲ୍, ତୁ ଜିଣିଲୁ । ଏବେ ଗପ ଶୁଣ୍ ।





Digitized by srujanika@gmail.com

କୋଉ କାଳର କଥା ହେଲାଣି ।

ଗୋଟିଏ ଗାଁରେ ଗରିବ ଲୋକଟିଏ ଥାଏ । ତା' ନାଁ ଅମଙ୍ଗ । କାମ ଧନ୍ଦା କିଛି ନ କରି ଘରେ ବସି ବସି ଖାଏ । କେତେ ଦିନ ବସି ଖାଆନ୍ତା ? ଧୀରେ ଧୀରେ ତା'ର ସବୁ ଧନ ସମ୍ପତ୍ତି ସରିଗଲା । ଜମିବାଡ଼ି ବିକ୍ରି ହୋଇଗଲା । ଘରେ ବାସନ କୁସନ ରହିଲାନି । ସ୍ତ୍ରୀ ଦେହରୁ ଗହଣାମାନ ଗଲା । ଶେଷକୁ ପିଠାପାତିଆ ଚଟୁ ବି ଘରେ ଦେଖିବାକୁ ମିଳିଲାନି ।

ପିଲାଝିଲା ନାହାନ୍ତି । ତଥାପି ସ୍ୱାମୀ ସ୍ତ୍ରୀ ତ ଖାଇବେ ! କ'ଣ କୋଉଠି ଅଛି ଯେ ବିକି ଭାଙ୍ଗି ଖାଇବେ ? ବଡ଼ ହୀନସ୍ତା ହେଲେ । ଶେଷକୁ ଦିନେ ଅମଙ୍ଗର ଭାରିଯା ଗାଳିମନ୍ଦ କଲା । କହିଲା, କେଉଁଠି ଯାଇ କାମ କରି ଘରକୁ କ'ଣ ଆଣେ ନ ହେଲେ ଆଉ ଘରକୁ ଆସିବୁନି । ମୁଁ ତୋ ମୁହଁ ଚାହିଁବିନି ।

ଭୋକ ବିକଳରେ ଅମଙ୍ଗ ଯ୍ୟା' ଦୁଆର ତା' ଦୁଆର ବୁଲି କାମ ମାଗିଲା । କିଏ କାମ ଦବ ? ସମସ୍ତେ ଜାଣନ୍ତି ଏଇଟା କାମ କରେନା, ବସି ବସି ଖାଏ । ଅଳସୁଆଙ୍କ ଗୁରୁ । ଯିଏ ଦେଖିଲା ଦୂର୍ ଦୂର୍ କଲା ।

ପେଟରେ ଭୋକ, ଆଖିରେ ଲୁହ । ଅମଙ୍ଗ ଧାଇଁ ପଳେଇଲା ଜଙ୍ଗଲ ଭିତରକୁ । କ'ଣ କରିବ ? ଜୀବନ ରଖି ଲାଭ କ'ଣ ? ଫଳମୂଳ ପାଇଲେ ଖାଇବ ନ ହେଲେ ବାଘଭାଲୁଙ୍କ ହାତରେ ଟେକିଦେବ ଜୀବନକୁ ।

ଏମିତି ମନସ୍ତାପରେ ବୁଲୁଚି, ଜଙ୍ଗଲ ଭିତରେ ଗୋଟେ ଭଙ୍ଗା ମନ୍ଦିର ଦେଖିଲା । ଭିତରେ ଠାକୁରାଣୀ ମୂର୍ତ୍ତିଟିଏ





Digitized by srujanika@gmail.com

ଥାଏ । ଚାରିଆଡ଼ ବଡ଼ ଅସନା । ଓଳାପୋଛା ନାହିଁ । ଅମଙ୍ଗୀକୁ ପୂଜାପୁଜା କିଛି ଜଣାନାହିଁ । ସେଇଠି ମୁଣ୍ଡିଆଟାଏ ମାରି କହିଲା ମରିବି ତ ନିଶ୍ଚେ, ଯାଏ ମନ୍ଦିରଟାକୁ ଟିକେ ଓଳେଇ ଦିଏ । ମନ୍ଦିର ଓଳୋଉ ଓଳୋଉ କ'ଣ ମନ ହେଲା ମନ୍ଦିର ଚାରିପଟୁ ଗଛଲଟା ଯେତିକି ପାରିଲା ସଫା କରିଦେଲା ।

କେତେ ଆଉ କରିବ ? ଭୋକରେ ପେଟ କଁ କଁ କରୁଥାଏ । ଗୋଡ଼ହାତ ଅବଶ । କେତେବେଳେ ସେ ସେଇଠି ଶୋଇପଡ଼ିଲା ଜାଣିନି ।

ହଠାତ୍ ତା'ର ନିଦ ଭାଙ୍ଗିଗଲା । ନିଦ ଭାଙ୍ଗିଲାବେଳକୁ ଦେଖିଲା ସାରା ମନ୍ଦିର ଭିତରଟା ଆଲୁଅ । ଦେବୀ ମା' ଠିଆ ହୋଇଛନ୍ତି ପାଖରେ ।

ଅମଙ୍ଗୀ ଉଠିଲାରୁ ଦେବୀ ମା' ତା'କୁ ଖିରି ଗିନାଏ ଦେଇ କହିଲେ, 'ନେ ପିଇଦେ ।' ଅମଙ୍ଗୀ ଜୀବନ ପାଇଲା ଯେମିତି । ଭୋକ ଶୋଷ ସବୁ କୁଆଡ଼େ ମିଳେଇ ଗଲା ତା'ର ।

ଦେବୀ ମା' କହିଲେ, "କାମ ହେଉଛି ଜୀବନ । ଯେ କାମ ନ କରି ଖାଦ୍ୟ ଖାଏ, ସେ ଖାଦ୍ୟ ଚୋରି ସଙ୍ଗେ ସମାନ । ତୁ ମୋ ମନ୍ଦିର ସଫା କଲୁ, ତେଣୁ ଖାଦ୍ୟ ପାଇଲୁ । ଏବେ ଘରକୁ ଯାଆ । ଯେବେ କାମ କରିବୁ ତୋ' ପେଟ ଅପୋଷା ରହବନି ।"

ସକାଳ ପାହିଲା । ଅମଙ୍ଗୀ ଫେରିଲା ଘରକୁ । ସେ ଶୁଣିଥିଲା ଦେବୀ ମା' ଦେଖାଦେଲେ ଧନ ଦରବ ଦିଅନ୍ତି । କାଇଁ କିଛି ତ ଦେଲେନି ? ତା'ର ବି ମନେ ପଡ଼ିଲାନି କିଛି ମାଗିବାକୁ । ତାଙ୍କୁ ଦେଖି ସେ ବୋକା ପାଲଟି ଯାଇଥିଲା ।

ଏଇମିତି ଭାବିଭାବି ଆସୁଚି, ବାଟରେ ଦେଖିଲା ଗୋଟିଏ କଣ୍ଟାବୁଦାରେ ଗୁଡ଼ିଏ କଣ୍ଟେଇକୋଳି ଫଳିଚି । ସବୁଯାକ ପାଚି ଟୁଳ୍‌ଟାଳ୍ । ଅମଙ୍ଗୀ ଭାବିଲା ଏଇତକ ହେଲେ କାମ କରେ । କଣ୍ଟେଇକୋଳି ତୋଳି ଘରକୁ ନିଏ । ସ୍ତ୍ରୀକୁ କହିବି କଣ୍ଟାଝଟାରେ ପଶି ଏତିକି ଆଣିଚି । କାଲିଠୁ କାମକୁ ଯିବି ।



ଅମଙ୍ଗୀ ଦି' ଆଞ୍ଜୁଳା କୋଳି ତୋଳିଲା । କୋଳିଯାକ ଗାମୁଛା ମୁଣ୍ଡରେ ବାନ୍ଧି ଗଣ୍ଠି ପକେଇବାକୁ ଯାଉଚି, ଏତିକିବେଳେ ଅଜବ କଥାଟାଏ ଘଟିଲା । ତା'ର ସବୁଯାକ କୋଳି ଟଙ୍କା ପାଲଟି ଗଲା । ଏତେ ଟଙ୍କା ଦେଖି ସେ କାବା । ଭାବିଲା ଇଏ ନିଶ୍ଚେ ଦେବୀ ମା'ଙ୍କ ଅବଦାନ । କାମ କଲେ ଫଳ ମିଳେ ।

ମନ ଖୁସିରେ ଅମଙ୍ଗୀ ଘରକୁ ଫେରିଲା । ପଇସାତକରେ ଆଗେ ଖଣ୍ଡେ ଜମି କିଣି ପକେଇଲା । ସେଇ ଦିନଠୁ କିଛି କାମ ନ କଲେ ସେ ମୁହଁରେ ପାଣି ଟୋପାଏ ବି ଦିଏନା ।







Digitized by srujanika@gmail.com

# ଝୁମୁକା



ଖେଳ ସରିଯାଇଥିଲା । ମାତ୍ର ଖେଳ ଥାନରୁ କେହି ଉଠୁ ନ ଥିଲେ । ରିଙ୍କି ଚାହୁଁଥାଏ ପିଙ୍କିକୁ, ପିଙ୍କି ଚାହୁଁଥାଏ ରିଙ୍କିକୁ ।

ରିଙ୍କି ଆଖିରେ ଟଳଟଳ ଲୁହ । ରିଙ୍କିର କାନ୍ଦୁରା ମୁହଁ ଦେଖି ପିଙ୍କି ମନ ଦୁଃଖରେ ବସିଥାଏ ପାଖରେ ।

ହେଲେ କିଏ କ'ଣ କରିବ ? କିଏ କ'ଣ ଜାଣିଶୁଣି ସେମିତି କରିଛି ?

ସବୁଦିନ ପରି ରିଙ୍କି ଓ ପିଙ୍କି ଆଜି ଖେଳୁଥିଲେ । ଗତକାଲି ଗାଁରେ ଥିଲା ମକର ଯାତ୍ରା । ସେଇଠିକି ଯାଇଥିଲେ ଦୁହେଁ ନିଜ ନିଜ ବାପାଙ୍କ ସାଙ୍ଗରେ । ଯାତ୍ରାରେ କେତେ ଜିନିଷ ! ହାତୀ, ଘୋଡ଼ା, ବଳଦ, ଜିରାଫ, ଭାଲୁ । ସବୁ ମାଟିରେ ଗଢ଼ା । ରଙ୍ଗ ଦିଆ ହୋଇ ଚକ୍ ଚକ୍ ଦିଶୁଛନ୍ତି ସମସ୍ତେ । ସବୁଠୁ ବଢ଼ିଆ ଦିଶୁଥିଲା ଦାନ୍ତ ଦେଖେଇଥିବା ହନୁମାଙ୍କଡ଼ ।



Digitized by srujanika@gmail.com

ମାଟି କଣ୍ଢେଇ । କାଳେ ଅଳପକେ ଭାଙ୍ଗିଯିବ, ସେଥିପାଇଁ ରିଙ୍କିର ବାପା ସେ ସବୁ କିଣିବାକୁ ମନାକଲେ । ଶେଷକୁ ରିଙ୍କି ଓ ପିଙ୍କି କିଣିଲେ ଦୁଇଟା ପ୍ଲାଷ୍ଟିକ୍ ଝୁମୁକା । ଟାଣ୍ ଟାଣ୍, ବେଶ୍ ବଢ଼ିଆ । ଲାଲ୍ ଲାଲ୍ । ଟିକିଏ ହଲେଇ ଦେଲେ ଶୁଭୁଥାଏ ଝୁମୁରୁ ଝୁମୁରୁ ।

ଆଜି ବାଜି ଲଗେଇ ଦୁହେଁ ଖେଳୁଥିଲେ । ଦେଖିବା କିଏ କେତେ ସମୟ ଝୁମୁକା ବଜେଇ ପାରୁଛି ।

ଚାଲିଥାଏ ଝୁମୁରୁ ଝୁମୁରୁ, ଝଣର୍ ଝଣର୍ । ହେଲେ ଏ କ'ଣ ? ଥଡ୍ କିନା ରିଙ୍କିର ଝୁମୁକାଟା ବେଣ୍ଟ ପାଖରୁ ଭାଙ୍ଗିଗଲା ।

ରିଙ୍କି କହିଲା- ଇସ୍ !

ପିଙ୍କି କହିଲା- ଆହା !

ରିଙ୍କି ଜାଣେ ଝୁମୁକା ଭାଙ୍ଗିଯାଇଛି ଜାଣିଲେ ବାପା ରାଗିବେ । ପିଙ୍କି ବି ଜାଣେ ସେ କଥା । ରିଙ୍କିର ବାପା ଟିକିଏ କଥାରେ ରାଗିଯାଆନ୍ତି ।

କ'ଣ କରିବେ ବୋଲି ଦୁହିଁଙ୍କର ମନ ଦୁଃଖ ।

ଏତିକିବେଳେ ପିଙ୍କି କହିଲା, ତୁ ମୋ ଝୁମୁକା ନେଇ ଯା' । ମତେ ତୋ' ଭଙ୍ଗା ଝୁମୁକା ଦେ । ମୋ ବାପା ମତେ କିଛି କହିବେନି । ତେଣେ ତୋ' ବାପା ବି ଜାଣିପାରିବେନି ଯେ ଏଇଟା ତୋ' ଝୁମୁକା ନୁହେଁ, କାରଣ ଦୁଇଟାଯାକ ତ ଏକାଭଳିଆ ।

ଲୁହ ଭିତରେ ରିଙ୍କି ପିଙ୍କିକି ଚାହିଁଲା । ଆହା, ପିଙ୍କି ତା'ର କେତେ ଭଲ ସାଙ୍ଗ ! ସେ କାଳେ ଗାଳି ଖାଇବ ବୋଲି କେତେ ବ୍ୟସ୍ତ ସିଏ ସତରେ !

ଶେଷକୁ ସେଇଆ ହେଲା ।

ପିଙ୍କି କହିଲା, ମୋ ଝୁମୁକା କ'ଣ, ତୋ' ଝୁମୁକା କ'ଣ ? କାଲି ସାଙ୍ଗ ହୋଇ ସେଇ ଗୋଟେ ଝୁମୁକାରେ ଖେଳିବା । ଏବେ ସେଇଟା ନେଇ ତୁ' ଘରକୁ ଯା' ।



Digitized by srujanika@gmail.com



# ଖୁଜୁବୁଜିଆ ବନା

ବନମାଳୀ ରାଉତରାୟ । ହେଲେ ତାକୁ ସମସ୍ତେ ଡାକନ୍ତି 'ବନା' । ଜେଜେମା' ଚିଡ଼ିଗଲେ କହେ ''ଖୁଜୁବୁଜିଆଟା'' । ସାଙ୍ଗମାନେ ଥଟ୍ଟା କରି କହନ୍ତି, ''ବନା ପଛକୁ ଅନା ।''

ବନାର ହାତଗୋଡ଼ ସବୁବେଳେ ଖୁଜୁବୁଜୁ ହେଉଥାଏ । ଚାଲି ଯାଉଯାଉ ସେ ଏଥିରେ ସେଥିରେ ହାତ ମାରେ । ସେଥିପାଇଁ ସେ ଯେ ହଇରାଣ ହୁଏ ନି ସେ କଥା ନୁହେଁ, କିନ୍ତୁ ତା'ମନ ସେମିତି ।



Digitized by srujanika@gmail.com

ଲୁହାକଣ୍ଟାଟାଏ ପାଇଲେ ସେ ଏଠି ସେଠି ଗାରାଏ । ବ୍ଲେଡ୍ ପାଇଲେ ନଖ କାଟିବା ଦରକାର ଥାଉ କି ନ ଥାଉ ସେ କାଟେ । ବେଳେ ବେଳେ ନଖ ଖଣ୍ଡିଆ କରି ପକାଏ। ଛୁରିପଟେ ପାଇଲେ ତ ସରିଲା କଥା । ଏ ଗଛରୁ ଡାଳ କାଟିଲାଣି ତ ସେଠି ଅମୃତଭଣ୍ଡା ଗଛରେ ଯାଇ ଭୁଷିଲାଣି । ନ ହେଲେ ଲୁଚେଇ ଲୁଚେଇ ସ୍କୁଲର ବେଞ୍ଚ ଚଉକିରେ କାଟିକାଟି ନିଜ ନାଆଁ ଲେଖିଲାଣି କି ଆଉ କ'ଣ କଲାଣି ।

ଏଥିପାଇଁ ସେ କେତେ ଯେ ମାଡ଼ଗାଳି ଖାଇଚି ତା'ର ହିସାବ ନାହିଁ । ସ୍କୁଲ୍‌ରେ ଗଣିତ ପିରିୟଡ୍ ଚାଲିଥାଏ । କ'ଣ ମନହେଲା ବାକ୍‌ସରୁ ଡିଭାଇଡର୍‌ଟା ବାହାର କରି ବେଞ୍ଚ୍ ଉପରେ ସେ ଖୋଳିବାରେ ଲାଗିଲା । ଗଣିତ ସାର୍‌ଙ୍କ ନଜର ପଡ଼ିଲା । ଆଉ କି ରକ୍ଷା ଅଛି ? ଗାଳି ଯେ ଗାଳି । ତା'ସାଙ୍ଗକୁ କାନମୋଡ଼ା ।

ହେଲେ କ'ଣ ହେବ ? ଦୁଇଦିନ ପରେ ଯେଉଁ କଥାକୁ ସେଇକଥା । ସାଙ୍ଗମାନେ ଦେଖିଲେ ସାଇକେଲ୍ ଚାବି ମୁନରେ ବନା ଝରକା ଫାଳରେ କ'ଣ ସବୁ ଲେଖୁଚି ।



ବନାର ଏଇ କଟାକଟି ଗୁଣ ଯୋଗୁଁ ବାପା, ମା', ଜେଜେ ମା' ବି ଗାଳି କରନ୍ତି ।

ଥରେ ବନା ମାମୁ ଘରକୁ ଯାଇଥିଲା । ଦେଖିଲା, ମାମୁଙ୍କ ନିଶକଟା କତୁରିଟା ଥୁଆ ହେଇଚି । ସାମ୍ନାରେ ଦର୍ପଣ । କତୁରିଟାକୁ ଦେଖୁ ଦେଖୁ କ'ଣ କାଟିବ ବୋଲି ବନାର ମନ ଖୁଜୁବୁଜୁ ହେଲା । କ'ଣ କାଟିବ,


Digitized by srujanika@gmail.com

କ'ଣ କାଟିବ ବୋଲି ଭାବୁଚି ଏତିକିବେଳେ ଦର୍ପଣରେ ନିଜ ମୁହଁଟାକୁ ଦେଖି ସେ ଖୁସି ହୋଇଗଲା । ଆରେ, ମୁଣ୍ଡବାଳଗୁଡ଼ାକ ଟିକେ ଲମ୍ବା ହୋଇଯାଇଚି । ସାଙ୍ଗେ ସାଙ୍ଗେ ସେ ପାନିଆ ବାହାର କରି ବାଳକୁ ଠିଆ କରି ଚର୍‌କିନା ମେଞ୍ଚେ କାଟି ପକେଇଲା । ହେଲେ ଏ କ'ଣ ତା' ପାଖଟା ଲମ୍ବା ଦିଶିଲା । ପୁଣି ଏଥର ସେ ଚର୍‌କିନା ଆଉ ମେଞ୍ଚେ କାଟି ଦେଲା । ହେ ଭଗବାନ୍ ଇଏ ତ ବେଶି ଛୋଟ ହୋଇଗଲା ! ଏଇମିତି କାଟୁ କାଟୁ କେତେବେଳେ ସେ ସାରା ମୁଣ୍ଡବାଳଯାକ କାଟି ପକେଇଲା ସେକଥା ଜାଣିପାରିଲାନି । ଶେଷକୁ ତା' ବାଳଯାକ ଠା'କୁ ଠା' ଘାସ କାଟିବା ପରି ଖାଲ ଢିପ ଦିଶିଲା । ମାଈଁ ଦେଖୁ ଦେଖୁ ଫେଁ କିନା ହସି ଦେଲେ । ଅଜା କହିଲେ ଏଇଟା ବଖଡ଼ିଆଟେ । ମାମୁ ଦେଖିଲେ, ବହେ ଗାଳି ଶୁଣିଲା ବନା । କେମିତି ସଜଡ଼ା ହେବ ବନାର ମୁଣ୍ଡବାଳ । ବଡ଼ ବିକୃତ ଦିଶୁଚି । ସେଇଠୁ ଡକା ହେଲା ଗାଁ ବାରିକକୁ । ସେତେବେଳକୁ ବେଳବୁଡ଼ ହେଲାଣି । ବାରିକ ତା' କାମରେ ଯାଇଥାଏ ବାହାରକୁ । ବନା ସେଇମିତି ମୁହଁ ଲୁଚେଇ ଘର ଭିତରେ ବସିରହିଲା । ବାହାରକୁ ବାହାରିବ କେମିତି ? ଯିଏ ଦେଖିବ ହସିବ । ବଡ଼ ଅପମାନିଆ ଲାଗିଲା ତାକୁ । ଆଈ କହିଲେ- ''ମୋ ରାଣ ଖାଆ, ଆଉ କେବେ ବି ଏମିତି କଟାକଟିରେ ହାତ ଦେବୁନି ।''

ସକାଳ ପାଇଲା । କାନ୍ଦୁରା ମୁହଁରେ ବନା ଯାଇ ବାରିକ ସାମ୍‌ନାରେ ବସିଲା । ବାରିକ ବି ହସି ପକେଇଲା ବନାର ମୁଣ୍ଡବାଳ ଦେଖି । ସେଇଠୁ ସେ କହିଲା- ''ୟା'କୁ ଆଉ ସଜାଡ଼ି ହବନି । ବନାବାବୁ ଲଣ୍ଡା ହେବେ ।''

ବନା ବିଚରା ଲଣ୍ଡା ହେଲା ।

ଘରକୁ ଫେରିଲା ଦି' ଦିନ ପରେ । ଘରେ ସେ କଥା ଯିଏ ଶୁଣିଲା ସିଏ ଛି'ଛାକର କରି କହିଲା । ବାପା ରାଗରେ ଗରଗର ହେଲେ । ବନା ସେଇଦିନଠୁ ଖୁଜୁବୁଜୁ ହେବା ଛାଡ଼ିଦେଲା । କଟାକଟି କରିବାକୁ ମନ ହେଲେ ତା'ର ଲଣ୍ଡା ହେବା କଥା ମନେପଡ଼ିଯାଉଥିଲା ।





Digitized by srujanika@gmail.com

# ଥ୍ୟାଙ୍କ୍ ୟୁ!

କିଛି ଦିନ ତଳର କଥା ।

ଗ୍ରୀଷ୍ମ ମାସ । ପ୍ରବଳ ଝାଞ୍ଜି ପରେ ମାଡ଼ି ଆସିଲା ଝଡ଼ ବର୍ଷା । ସାଇଁ ସାଇଁ ପବନ ବୋହିଲା । କୁଆପଥର ପଡ଼ିଲା ଦୁଲ୍‌ଦାଲ୍ ହୋଇ । ଗଛପତ୍ରରୁ କେତେ ନା କେତେ ଡାଳ ଭାଙ୍ଗିଗଲା । କିଏ କେଉଁଠି ଉପୁଡ଼ି ପଡ଼ିଲେ ।

ଜଣେ ବାବୁ ଫଟଫଟିଆ ଚଳେଇ ରାସ୍ତାରେ ଯାଉଥିଲେ । ପିଚୁ ସଡ଼କ ପରେ ନାଲି ରାସ୍ତା ଦେଇ ସେ ଗାଁକୁ ଯିବେ । ଯାଉ ଯାଉ ଏମିତି ବର୍ଷା । ଦେହମୁଣ୍ଡ ସରପଟ ଓଦା । ଏବେ କରିବେ କ'ଣ? କେଉଁଠି ଟିକେ ଅଟକି ନ ଗଲେ ନ ଚଳେ । ବାଟ ସାରା ବଡ଼ ବଡ଼ ଗଛ । ସମସ୍ତେ ଦୋହଲୁଛନ୍ତି ପବନରେ । ଏତେବେଳେ ଗଛ ତଳକୁ ଗଲେ ବିପଦ । ଚଡ଼ଚଡ଼ି ମାରିଦେଇପାରେ । ଡାଳ ଭାଙ୍ଗି ଉପରେ ପଡ଼ିଯିବ ଯଦି?



Digitized by srujanika@gmail.com

ସଡ଼କ କଡ଼ରେ ଫଟିଫଟିଆଟିକୁ ସେ ବନ୍ଦ୍ କରିଦେଲେ। ଦଉଡ଼ି ଗଲେ ଅଳ୍ପ ଦୂରରେ ଥିବା ଗୋଟିଏ ଘରକୁ। ବାରଣ୍ଡାରେ ଯାଇ ମୁଣ୍ଡ ଗୁଞ୍ଜିଲେ।

କେତେବେଳକେ ବର୍ଷା ଛାଡ଼ିଲା।

ଏଥର ବାବୁ ସେଇ ଓଦା ଲୁଗାପଟାରେ ଗାଁ ଆଡ଼କୁ ଚାଲିଲେ। ବେଳ ବୁଡ଼ିଗଲାଣି। ଆଉ ଘଡ଼ିକେ ସଂଜ ହୋଇଯିବ। ଫଟଫଟିଆ ଚାଲିଥାଏ ଆଗକୁ।

ହଠାତ୍ ରାସ୍ତାରେ ପଡ଼ିଥିବା ଗୋଟେ ଚଢ଼େଇ ବସା ଉପରେ ବାବୁଙ୍କର ନଜର ପଡ଼ିଲା। କାହିଁକି କେଜାଣି ସେ ଗାଡ଼ି ଅଟକେଇ ଦେଲେ। ଦେଖିଲାବେଳକୁ ଚଢ଼େଇ ବସାରେ ଚାରୋଟି କୁନିକୁନି ଛୁଆ। ସଭିଏଁ ଚେଁ ଚବର କରୁଛନ୍ତି। ପାଟି ମେଲେଇ ସତେ ଯେମିତି କହୁଛନ୍ତି- "ମା' କାଇଁ, ମା' କାଇଁ? ଆମକୁ ଭାରି ଭୋକ, ଭାରି ଭୋକ!"

ବାବୁ ଜାଣିପାରିଲେ, ସେଇ ପାଖ ଗଛରୁ ଝଡ଼ ବତାସରେ ବସାଟି କେମିତି ଖସି ପଡ଼ିଛି। ଯା'ହଉ ଛୁଆଗୁଡ଼ିଙ୍କର କିଛି କ୍ଷତି ହେଇନି। ସେ ଉପରକୁ ଚାହିଁଲେ। ଆରେ ହେଇ ତ ମା'ଚଢ଼େଇ ଉପରେ ବସିଛି। ବସାର କିଛି ଅଂଶ ଲାଖି ରହିଛି ଗଛ ଡାଳର କେନାରେ। ମା' ଚଢ଼େଇ ବି ଚେଁ ଚେଁ କରୁଛି।

ବାବୁଙ୍କର ମନ ତରଳିଗଲା। ଆହା କୁନି ଛୁଆଗୁଡ଼ିକ। ସମସ୍ତେ ଥୁରୁଥୁରୁ ହେଉଛନ୍ତି ପାଣିମାଡ଼ ଖାଇ। ଏମିତି ପଡ଼ିରହିଲେ ଆଉ ପହରକୁ ଜୀବନ ନ ଥିବ।

ସେଇଠୁ ବସାଟିକୁ ହାତରେ ଉଠେଇ ସେ ଗଛ ଚଢ଼ିବାକୁ ଚେଷ୍ଟା କଲେ। ତାଙ୍କୁ ଗଛ ଚଢ଼ା ଭଲ ଜଣା ନ ଥାଏ। ଖସି ଯାଉଥାଏ ଗୋଡ଼। ଚଢ଼େଇଛୁଆମାନେ ଆହୁରି ଆହୁରି ଚେଁ ଚାଁ କରୁଥା'ନ୍ତି।

ବହୁ କଷ୍ଟରେ ବାବୁ ପହଞ୍ଚିଗଲେ ଗଛର ସେଇ ଅଧା ବସା ଝୁଲୁଥିବା ଦୋ'କେନା ପାଖରେ। ଏବେ ଯତ୍ନ କରି ବସାଟିକୁ ସେଇଠି ସଜାଡ଼ିସୁଜୁଡ଼ି ଥୋଇଦେଲେ। ସେତେବେଳକୁ ମା'ଚଢ଼େଇ ଡରିଯାଇ ବସିଥାଏ ଆଉ ଗୋଟେ ଉପର ଡାଳରେ।

ବାବୁଜଣକ ଚଢ଼େଇ ଛୁଅମାନଙ୍କୁ ଚାହିଁଲେ।

ସେଇ ଚେଁ ଚାଁ, ଚବର ଚବର। ନାଲି ନାଲି ପାଟି ମେଲା କରି କ'ଣ ଯେମିତି କହୁଛନ୍ତି। ବାବୁଙ୍କୁ ଶୁଭିଲା, ସେମାନେ ତାଙ୍କୁ "ଥ୍ୟାଙ୍କ୍ ୟୁ" କହୁଛନ୍ତି।

ଘରକୁ ଫେରିଆସି କୁନିଝିଅକୁ ସେ ସବୁକଥା କହିଲେ। ଝିଅଟି ବେକରୁ ଓହଳିପଡ଼ି କହିଲା- "ବାପା, ଥ୍ୟାଙ୍କ୍ ୟୁ।"

ଆନନ୍ଦରେ ପୂରି ଉଠିଲା ବାବୁଙ୍କ ମନ।







Digitized by srujanika@gmail.com

ନବ ମଉସାଙ୍କ କଥା ଶୁଣି ଲିଟୁର ବିଶ୍ୱାସ ହେଲାନି । ''ନା' ମ' ଏମିତି ଖାଲି ଖାଇଦେଲେ ପାଠ ଭଲ ହୋଇଯିବ? ଇଏ କେବଳ କହିବା କଥା ।

ସେ ସପ୍ତମ ଶ୍ରେଣୀରେ ପଢ଼େ । ଭଲ ଖେଳେ, ଗୀତ ଗାଏ, ସବୁ ବିଷୟରେ ବି ଭଲ ନମ୍ବର ରଖେ । ମାତ୍ର ଗୋଟିଏ ବିଷୟରେ ଅଡୁଆ । ସେଇଟା ହଉଚି ଗଣିତ । କାହିଁକି କେଜାଣି, ଗଣିତ ଆଡ଼କୁ ତା' ମନ ଟାଣେନା । ସାର୍ ବେଳେବେଳେ ପ୍ରଶ୍ନ ପଚାରନ୍ତି । ଲିଟୁ ଠାକୁରଙ୍କୁ ମନେ ମନେ ଡାକି କହେ-''ତା'ଆଡ଼କୁ ଯେମିତି ପ୍ରଶ୍ନ ନ ଆସୁ ।'' ସାର୍ କିନ୍ତୁ ପ୍ରଶ୍ନ ପଚାରି ଗାଳି ଦିଅନ୍ତି । କାରଣ ସେ ସବୁବେଳେ ଭୁଲ୍ ଉତ୍ତର ଦିଏ । ଶେଷକୁ ଶୁଣିବାକୁ ପଡ଼େ- ''ଏଇଟା ଗୋଟେ 'ଅକାଳ କୁଷ୍ମାଣ୍ଡ' ।''

'ଅକାଳ କୁଷ୍ମାଣ୍ଡ' କ'ଣ ଜାଣି ନ ଥିଲା ଲିଟୁ । ପଚାରିଲାରୁ ଜେଜେ କହିଲେ, ''ତା'ର ଅର୍ଥ ଅଦିନିଆ ପାଣିକଖାରୁ, ମାନେ ବର୍ଷାଦିନରେ ନ ଫଳି ଯେଉଁ ପାଣିକଖାରୁ ଅଦିନରେ କଷି ଧରେ ଆଉ ଅଳ୍ପ ଦିନରେ ପଚି ଝଡ଼ିଯାଏ । ଅଯୋଗ୍ୟ ଲୋକକୁ କହାଯାଏ, ଅକାଳ କୁଷ୍ମାଣ୍ଡ ।

ଯେତେବେଳେ ତା'ର ଅର୍ଥ ତାକୁ ଜଣା ନ ଥିଲା, ସେ ସହି ଯାଉଥିଲା, ମାତ୍ର ଏବେ ସେ କଥା ଶୁଣିଲେ ତା' ମୁହଁ ଶୁଖିଯାଏ । ସତରେ କ'ଣ ସେ ଅଯୋଗ୍ୟ? ଗୋଟେ ଅଦିନିଆ ପାଣିକଖାରୁ ?

# ମୁଗ ଡାଲି





Digitized by srujanika@gmail.com

ଦିନେ ନବ ମଉସାଙ୍କୁ ବାପା ଡାକିଥିଲେ ଖାଇବା ପାଇଁ । ଉଷୁନା ଭାତ, ଚିଙ୍ଗୁଡ଼ି ଝୋଳ, ପୋଟଳ ଭଜା ସାଙ୍ଗକୁ ହୋଇଥାଏ ମୁଗ ଡାଲି । ମହମହ ବାସୁଥାଏ ଚିଙ୍ଗୁଡ଼ି ଝୋଳ । ଲିଟୁ ଖାଇବାପାଇଁ ବସୁ ବସୁ ମୁଗ ଡାଲି ଗିନାଟାକୁ ଘୁଞ୍ଚେଇଦେଲା । କହିଲା, ''ମୁଗ ଡାଲି କାହିଁକି ଦେଇଚୁ ବୋଉ, ମୋର ଦରକାର ନାଇଁ, ମୁଁ ଝୋଳ ଗୋଳେଇ ଖାଇବି ।''

ବାପା ବୁଝେଇଲେ, ଅଳ୍ପ ମୁଗ ଡାଲି ଖା' । ଲିଟୁ କିନ୍ତୁ ନ ଶୁଣିଲା ପରି ରହିଲା । ବୋଉ ପୋଟଳ ଭଜା ପରଷୁ ପରଷୁ କହିଲେ- ''ଏ ପିଲାଟା ମୁଗ ଡାଲିକି ମୋଟେ ଭଲ ପାଇଲାନି । କହିଲେ କ'ଣ କାହା କଥା ଶୁଣୁଚି ?''

ସେତିକିବେଳେ ନବ ମଉସା ଚଳୁ କରିବା ପାଇଁ ପାଣି ମାଗିଲେ । କଥାର ମୋଡ଼ ସେ ଆଡ଼କୁ ପଳେଇଲା । କୋଉ କଥାରୁ ହଠାତ୍ ବାପା କହିଲେ, ଜାଣିଛୁ ଲିଟୁ, ତୋ'ର ଏ ମଉସା ଓ ମୁଁ ଏକା ସ୍କୁଲ୍‌ରେ ପଢୁଥିଲୁ । ତାଙ୍କର ଗଣିତରେ ସବୁବେଳେ ଶହେରୁ ଶହେ । ଆମେ ଆଶ୍ଚର୍ଯ୍ୟ ହେଉ ସେ କେମିତି ସବୁବେଳେ ଶହେରୁ ଶହେ ରଖୁଛନ୍ତି ।

ନବ ମଉସା କିନ୍ତୁ ନ ଶୁଣିବା ପରି ବସିଥାଆନ୍ତି । ମାଗି ମାଗି ଖାଉଥାନ୍ତି ମୁଗ ଡାଲି । କହୁଥାନ୍ତି- ''ବାଃ, ବଢ଼ିଆ ହେଇଚି ମୁଗ ଡାଲିଟା । ନୟାଗଡ଼ ପଟର ବୋଧେ ।''

ଗଣିତରେ ସବୁବେଳେ ଶହେରୁ ଶହେ ଶୁଣି ଲିଟୁ, ମଉସାଙ୍କୁ ଖାଲି ଚାହୁଁଥାଏ । ମୁଣ୍ଡ ନଇଁ ଯାଉଥାଏ ତାଙ୍କ ପାଖରେ ।

ଖିଆପିଆ ସରିଲା । ମଉସା ପଚାରିଲେ- ''ଆଉ ଲିଟୁ, ପଢ଼ାପଢ଼ି କେମିତି ଚାଲିଛି? ସେ ଉତ୍ତର ଦବ କ'ଣ, ବାପା ତାଙ୍କ ଆଡ଼ୁ କହିଲେ- ''ସବୁ ଠିକ୍ ଯେ ଗଣିତ ନାଆଁ ଶୁଣିଲେ ତ ସେ ଛାନିଆ, ହବ କ'ଣ? ତୁମେ ଟିକେ ତା'କୁ ବତେଇଦେଲ ସେ ଗଣିତରେ କେମିତି ଭଲ କରିବ!''

ନବ ମଉସା ହସି ହସି କହିଲେ- ''ଲିଟୁ ଏ କଥା କ'ଣ ସତ? ଯାଃ,





Digitized by srujanika@gmail.com

ତୁ ତ ମୁଗ ଡାଲି ଖାଉନୁ ଆଉ ଗଣିତ ହେବ କେମିତି ? ମୁଗ ଡାଲି ପ୍ରଚୁର ଖାଆ, ଦେଖିବୁ ପଛରେ ଗୋଡ଼େଇବ ଗଣିତ ।''

ଲିଟୁର ଚିନ୍ତା ବଢ଼ିଲା । ସତରେ କ'ଣ ମୁଗ ଡାଲି ଖାଇଲେ ଅଙ୍କ ଭଲ ହୁଏ? କେଜାଣି? ହୋଇଥିବ! ନ ହେଲେ ନବ ମଉସା କେମିତି ଏତେ ଭଲ କରୁଥିଲେ! ସେ ତ ଆଜି ପ୍ରାୟ ଦୁଇଗିନା ମୁଗ ଡାଲି ଖାଇଲେ!

ମୁଗ ଡାଲି ଲିଟୁକୁ ମୋଟେ ଭଲ ଲାଗେନା । ପାଟିରେ ଦେଲେ ଥୁ ଥୁ କରେ । ଏବେ ସେ ହରଡ଼ଘଣାରେ ପଡ଼ିଲା । ଇଆଡ଼େ ମନ ଗଣିତ କେମିତି ଭଲ ହୁଅନ୍ତା, ସିଆଡ଼େ ମୁଗ ଡାଲି ପ୍ରତି ଘୃଣା ।

ଦିନେ ସେଇଠୁ ସେ ଠିକ୍ କଲା, ଯାହା ହେଉ ପଛେ ଏଣିକି ମୁଗ ଡାଲି ଖାଇବ । ସେ ମୁଗ ଡାଲି ଖାଇବବୋଲି ମାଗିବା ଦେଖି ବୋଉ ଆଶ୍ଚର୍ଯ୍ୟ ହେଲେ । ବାପା ହସିଲେ । ଜେଜେ କହିଲେ, ହଉ ହେଲା, ଆଗେ ଖାଉ ନ ଥିଲା , ଏବେ ମନକରୁଚି ଯଦି ଖାଉ । ନବ ମଉସାଙ୍କ କଥା ସେମାନଙ୍କର ମନେ ରହିବ କାହିଁକି?

ଲିଟୁ ଏବେ ନାକ କାନ ବୁଜି ମୁଗ ଡାଲି ଖାଏ, ଆଉ ଅଙ୍କ ବହି ଧରି ବସେ । କାହାକୁ ଏ କଥା କହେନା । ଦ୍ୱିପ୍ରହର ସାରା କୁଆଡ଼େ ନ ଯାଇ ବହିରୁ ଉଦାହରଣ ଦେଖି ଦେଖି ଅଙ୍କ କଷେ । ଗୋଟେ, ଦୁଇଟା, ପାଞ୍ଚଟା । ଅଙ୍କ କରି ସାରି ଉତ୍ତର ମିଳାଏ । ଆରେ ବାଃ, ସବୁ ଉତ୍ତର ଠିକ୍ । ତା' ହେଲେ ତାକୁ ଗଣିତ ଆସୁଚି । ଆଶ୍ଚର୍ଯ୍ୟ କଥା, ଏଣିକି ଗଣିତ ତାକୁ ଭଲ ଲାଗୁଥିଲା । ଷାଣ୍ମାସିକ ପରୀକ୍ଷା ପରେ ଦିନେ ଗଣିତ ସାର୍ ତା'କୁ ଦେଖି କହିଲେ- ''କିରେ! ତୁ ତ ଗଣିତରେ ଗଣେଶ ପାଲଟି ଗଲୁଣି?''

ଆନନ୍ଦରେ ଫୁଲି ଉଠିଲା ତା'ର ମନ ।

ଏବେ ଘରେ କେଉଁଦିନ ମୁଗ ଡାଲି ହୋଇ ନ ଥିଲେ ସେ ବୋଉକୁ କହୁଥିଲା- ''ମାଛ ଝୋଳ ହେଇଥିଲେ କ'ଣ ହେଲା, ମୁଗ ଡାଲି କାହିଁକି କରିନୁ?''

ଦିନେ ପୁଣି ନବ ମଉସା ଆସିଲେ ଘରକୁ । ଲିଟୁ ଖାଲି ଛନଛନ ହେଉଥାଏ କହିବା ପାଇଁ ଯେ ମୁଗ ଡାଲି ଖାଇବାରୁ ତା'ର ଗଣିତ ଏବେ ଭଲ ହେଉଛି । ଶେଷକୁ ସେ ମଉସାଙ୍କୁ ମନ ଖୋଲି ସବୁ କଥା କହିଦେଲା ।

ନବ ମଉସା ହସି ଉଠିଲେ । କହିଲେ- ''ଲିଟୁ, ମୁଗ ଡାଲି ଯୋ'ଗୁଁ ତୋର ଗଣିତ ଭଲ ହେଲା ନୁହେଁ, ତୋ ନିଷ୍ଠା ଯୋଗୁଁରୁ ହେଲା । ଆଗରୁ ତୁ ଗଣିତକୁ ଡରୁଥିଲୁ, ମୁଗ ଡାଲି ଖାଇ ଭାବିଲୁ, ମୁଁ ତ ମଉସାଙ୍କ କହିବା ଅନୁସାରେ ମୁଗ ଡାଲି ଖାଉଛି, ଡରିବି କାହିଁକି ? ସେଇଥିପାଇଁ ଗଣିତ ତୋ' ପାଖରେ ହାର୍ ମାନିଲା । ଏ କଥା ସତ ଯେ ମୁଗ ଡାଲିରେ ପ୍ରଚୁର ପ୍ରୋଟିନ୍ ଅଛି ଓ ପ୍ରୋଟିନ୍ ବୁଦ୍ଧି ବଢ଼େଇବାରେ ସାହାଯ୍ୟ କରେ, ମାତ୍ର ଗଣିତରେ ଭଲ ହେବା ପ୍ରକୃତରେ ତୋ' ଭୟଶୂନ୍ୟ ପରିଶ୍ରମର ଫଳ ।''

ଲିଟୁ କିନ୍ତୁ ଭାବୁଥିଲା ମୁଗ ଡାଲି କଥା ।



Digitized by srujanika@gmail.com

ପ୍ରତିଥର ଟିଉସନ୍‌ରୁ ଘରକୁ ଫେରିଲାବେଳେ ଟୁକୁନା ଛାତିଟା ଧପ୍‌କିନା ହୋଇଯାଏ । ତଳ ସାଇରୁ ଦେଉଳ ବେଢ଼ା ସାଇ । ତାଙ୍କ ଘର ଦେଉଳ ବେଢ଼ା ସାଇରେ, ମାତ୍ର ଟିଉସନ୍ ମାଷ୍ଟ୍ରେ ପଢ଼ାନ୍ତି ତଳ ସାଇ ତାଙ୍କ ନିଜ ଘରେ । ମଝିରେ ଅଧମାଇଲିଏ ତଫାତ୍ । ସେତିକି ଭିତରେ ବୁଦିବୁଦିକିଆ ଗଛ, ବାଉଁଶ ବଣ, କିଆ ବଣ, ଡେଙ୍ଗୀଡେଙ୍ଗୀ ତାଳଗଛ ଚାରିଟା । ପୁଣି ବାଟ କଡ଼ରେ ସରୁସରୁ ଓହଳ ଝୁଲିଥିବା ଗୋଟେ କୋଉକାଳର ବରଗଛ । ଭାରି ଡର ମାଡ଼େ ସେଇ ଗୋହିରି ଖଣ୍ଡକ ।






Digitized by srujanika@gmail.com

ଇଲୋ ବୋଉଲୋ! ଟିକିଏ କେଉଁଠି ଖୁଡ୍‌କିନା ହେଲେ ନିଆଁଝୁଲ ଖସିପଡ଼େ ଛାତିରୁ ।

ସବୁଦିନେ ରାତି ନଅଟାରେ ଟିଉସନ୍ ସରେ । ଟୁକୁନା ବାହାରିପଡ଼େ ଘରକୁ ଫେରିବାକୁ । କାନ୍ଧରେ ଓହଳି ଥାଏ ବସ୍ତାନି । ପେଟ ଆଉଣ୍ଡି ହେଉଥାଏ ଭୋକରେ ।

କିଏ ଜଣେ କହୁଥିଲା ସେ ବରଗଛରେ ବ୍ରହ୍ମରାକ୍ଷସ ଅଛି । ଡାଳରେ ସେ ଗୋଡ଼ ଲମ୍ବେଇ ବସେ । ତାଳଗଛ ପରି ଗୋଡ଼ ଦିଇଟା ଲମ୍ବିଥାଏ ମାଟି ଉପରକୁ । ତା' ପାଟି କୁଆଡ଼େ ଘଡ଼ଘଡ଼ି ଭଳି । ଏକୁଟିଆ ଦେଖିଲେ ସେ ପ୍ରଶ୍ନ ପଚାରେ । ଉତ୍ତର ଦେଇ ନ ପାରିଲେ ସେଇଠି ଶେଷ ।

ଟୁକୁନାକୁ ପ୍ରାଣାନ୍ତକ ଡରମାଡ଼େ, ହେଲେ ସେ କହିବ କାହାକୁ ? ବୋଉ ଏକୁଟିଆ ଘରେ । ଦୁଇ ବରଷ ତଳେ ପଞ୍ଚମ ଶ୍ରେଣୀରେ ପଢୁଥିବା ସମୟରେ ବାପା ଆରପାରିକୁ ଚାଲିଗଲେ । କିଏ ଅଛି ଯେ ତାକୁ ଆସି ଟିଉସନ୍‌ରୁ ନେବ ? ବୋଉକୁ ଏକଥା କହିଲେ ସେ ଆହୁରି ଡରିଯିବ ।

ମନକଥା ମନରେ ମାରି ଟୁକୁନା ରହେ । ବେଳ ଥାଉଥାଉ ସିନା ସେ ଟିଉସନ୍‌କୁ ପଳେଇ ଆସେ, ହେଲେ ଫେରିଲାବେଳେ? ଗାଁ ଭୂଇଁ ଜାଗା । ରାତି ନଅ ବେଳକୁ ନିଶା ଗର୍ଜୁଥାଏ ସାଇଁସାଇଁ । ସେ ଅପେକ୍ଷା କରେ ତଳସାଇରୁ କିଏ ଦେଉଳବେଢ଼ା ସାଇ ଆଡ଼େ ଯାଉଛି ନା ନାଇଁ । ଅନେକ ସମୟରେ ସାଥୀ ମିଳିଯାଆନ୍ତି । କାରଣ ସେଇଟା ବସ୍‌ଷ୍ଟାଣ୍ଡ୍ ପାଖ ବଜାରରୁ ଗାଁ ଭିତରକୁ ଫେରିବା ବାଟ । ମାତ୍ର ବେଳେ ବେଳେ ଘଣ୍ଟେ ଦେଢ଼ଘଣ୍ଟା ଅପେକ୍ଷା କରିବାକୁ ପଡ଼େ । ବିଚରା ଟୁକୁନା ପେଟକୁ ଚିପି ଠିଆ ହୁଏ ବାଟ କଡ଼ରେ ।

ଲୋକ ଦେଖିଲେ ପିଣ୍ଡରେ ପ୍ରାଣ ପଶେ । ଡଗ ଡଗ ହୋଇ ସେ ଧାଏଁ ପଛରେ । ଡେଇଁଯାଏ ତଳସାଇରୁ ଦେଉଳବେଢ଼ା ସାଇକୁ ଲାଗିଥିବା ବିପଦସଂକୁଳ ଇଲାକା ଖଣ୍ଡକ ।

ଥରେ ଶୀତ ଦିନେ ଦୁଇ ଘଣ୍ଟା ଅପେକ୍ଷା କଲା ପରେ ବି କେହି ସାଥୀ ମିଳିଲେନି । ବିଚରା ଚଦର ଘୋଡ଼େଇ ହୋଇ ଆଖିବୁଜି ସେ ଖଣ୍ଡକ ପାରି ହୋଇଥିଲା । ଭାଗ୍ୟ ଭଲ ବାଟରେ କିଛି କୋଉଠି ହାବୁଡ଼ିନି । ସାଇ ମୁଣ୍ଡ ହେବାରୁ ତା' ଜୀବନ ରହିଗଲା ଯେମିତି । ନ ହେଲେ ସେତେବେଳ ଯାଏଁ ସେ ଠକ୍ ଠକ୍ ଥରୁଥାଏ ଡରରେ ।

ଦିନକର କଥା । ଛବି ମାଉସୀ ଆସିଥିଲେ ତାଙ୍କ ଘରକୁ । ବୋଉର ପିଉସୀ-ଝିଅ-ଭଉଣୀ ଛବି ମାଉସୀ । ବୋଉକୁ ଭାରି ଭଲ ପାଆନ୍ତି, ତାକୁ ବି । ପ୍ରାୟ ତିନି ଚାରି ଦିନ ସେ ରହିଲେ ତାଙ୍କ ଘରେ ।

ଛବି ମାଉସୀ ବଢ଼ିଆ ଗପ କହନ୍ତି । କଳାବତୀ ଗପ, ବୁଢ଼ୀ ଅସୁରୁଣୀ କଥା, କୁହୁକ-ଭଅଁର କାହାଣୀ । କାଳିଜାଈ ଗୀତ ଗାଆନ୍ତି ସ୍ୱର ଦେଇ ।

ଖରା ଦିନ । ଦି'ପହର ବେଳ । ଟୁକୁନା ଶୋଇଥିଲା ଛବି ମାଉସୀଙ୍କ ପାଖ ଖଟରେ । ମାଉସୀ ତା' ପାଠପଢ଼ା କଥା ପଚାରୁଥିଲେ । ଏମିତି କଥା ପଡୁ ପଡୁ ସେ ତା' ଡର କଥା କହିଦେଲା । ଯୋଗକୁ ବୋଉ ନ ଥିଲା ସେଠି ।



Digitized by srujanika@gmail.com

ଟୁକୁନାର ସବୁବେଳେ ଇଚ୍ଛା, ବୋଉ ତା'ର କିଛି ଅସୁବିଧା କଥା ନ ଜାଣୁ । ନ ହେଲେ ବିଚାରୀ ହାତଯୋଡ଼ି ଠାକୁରଙ୍କୁ ଡାକି କାନ୍ଦିବ ।

ଛବି ମାଉସୀ କିନ୍ତୁ ଟାଣୁଆ ଲୋକ । ଟୁକୁନା କଥା ଶୁଣି ସେ ଉଠି ବସିଲେ । କହିଲେ, "ଏଇ କଥା? ରହ ମୁଁ ତତେ ଗୋଟେ ଡେଉଁରିଆ ଦଉଚି । ସେଇଥିରେ ତୋ ଡର ଭୟ ସବୁ ଛାଡ଼ିଯିବ ।"

ହେଁ! ଡେଉଁରିଆରେ ଡର ଛାଡ଼ିଯିବ? ଆଁ କରି ଚାହିଁଲା ଟୁକୁନା । ଛବି ମାଉସୀ କହିଲେ, "ଆରେ, ପିନ୍ଧିବା ଡେଉଁରିଆ ନୁହଁରେ, କଥାର ଡେଉଁରିଆ । ମୁଁ ଯାହା କହୁଛି ଶୁଣ୍ ।"

ଟୁକୁନା ବି ଏଥର ଖଟରୁ ଉଠିବସି ଚାହିଁଲା ମାଉସୀଙ୍କୁ ।

ମାଉସୀ କହିଲେ, " ମନେ ରଖିଥା , ତତେ ଯେତେବେଳେ ଡରମାଡ଼ିବ ତୁ ବଡ଼ ପାଟିରେ ଗୀତ ଗାଇବୁ । ସେମିତି ହେଲେ କ'ଣ ହବ ଜାଣିଚୁ? ତୋ ସ୍ୱର ତୋ' ପାଖରେ ଜଣେ ଲୋକ ହୋଇ ଠିଆ ହେବ । ଲାଗିବ ତୋ ସାଙ୍ଗରେ କିଏ ଜଣେ ଅଛି । ଆଉ ଡର ଲାଗିବନି ।

ପୁଣି ଯଦି ଜଣାଣ ଗାଇବୁ ତତେ ଲାଗିବ ଠାକୁର ତୋ' ପାଖରେ ଅଛନ୍ତି । ଠାକୁର ପାଖରେ ଥିଲେ ଡର କ'ଣ, ଭୟ କ'ଣ? ଆଉ ବ୍ରହ୍ମରାକ୍ଷସ ନା ଫ୍ରହ୍ମରାକ୍ଷସ । ସବୁ କୁଆଡ଼େ ଉଭାନ୍ ହୋଇଯିବେ । ତୋର ତ ସ୍ୱରଟି ଭାରି ମିଠା । ତୁ ଭୟ କରିବୁ କାହିଁକି? କାଲିଠୁ ସେଇଆ କର, ଦେଖିବୁ କେମିତି ଫଳ ଦବ ମୋ କଥାର ଡେଉଁରିଆ !"

ସତକୁ ସତ ତା' ପରଦିନ ଯେମିତି ଟିଉସନ ଛୁଟି ହେଇଚି ଟୁକୁନା ବାହାରିପଡ଼ିଲା ଗୋହିରି ବାଟକୁ । ବେଶ୍ ବଡ଼ପାଟି କରି ଗାଇଲା, "ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ..." । ପହିଲେ ପହିଲେ ଗୀତ ଆରମ୍ଭ କଲାବେଳେ ସେ ଅବଶ୍ୟ ଆଖି ବୁଜି ଦେଇଥିଲା । ହେଲେ ଗାଉ ଗାଉ ସେ ଏଥର ଆଖି ମେଲି ଆଗକୁ ଚାଲିଲା ।

ଆଶ୍ଚର୍ଯ୍ୟ କଥା ! ଗୀତ ସରିଲାବେଳକୁ ସେ ଆସି ଦୁଆର ମୁହଁରେ ହାଜର । ଡର ଫର କିଛି ଜଣାପଡ଼ିଲାନି ।





Digitized by srujanika@gmail.com



# ଟଙ୍କା ଗଛ

ଟିପୁ ତିନି ଚାରିଥର ଯାଇ ଦେଖି ଆସିଲା । ହେଲେ ଟଙ୍କା ଗଛ କାଇଁ ? ପତର ନା ଫତର! ଗଜାଟିଏ ସୁଦ୍ଧା ବାହାରିନି ।

ପଢ଼ିଥିବା ଗପରେ ତ ଗାଈଆଳ ପିଲାଟା ମଣ୍ଡା ପୋତି କହିଥିଲା- ''ମଣ୍ଡାରେ ମଣ୍ଡା, କାଲିକୁ ଗଜା ହୋଇ ପତର ମେଲିଥିବୁ, ନ ହେଲେ ମାମୁଘର କଟୁରି ଆଣି ଚୋଟେ ଦେବି ।'' ସେତିକିରେ ମଣ୍ଡାଗଛ ବାହାରିଥିଲା ।

ସେ କିନ୍ତୁ ଟଙ୍କା ପୋତି ସେଥିରେ ପାଣି ଦେଇଥିଲା ଆଉ କହିଥିଲା, ''ଟଙ୍କାରେ ଟଙ୍କା, କାଲିକୁ ଗଛ ହୋଇ ଉଠିଥିବୁ ନ ହେଲେ ଆମ ଧୁଣ୍ଡା ଶାବଳ ଆଣି ତତେ



Digitized by srujanika@gmail.com

ଖେଞ୍ଚେ ଦେବି ।'' ହେଲେ କାଇଁ, ଗଛ ନା ଫଛ? ମନଟା ଖରାପ ହୋଇଗଲା ତପୁର । ତଥାପି ଭରସା ଥାଏ, କାଳେ ଟଙ୍କା ଗଛଟା ଉଠିବ! ସେମିତି ସିନା ଧମକେଇଥିଲା, ସତକୁ ସତ ସେ ଶାବଳ ଆଣିଥାଆନ୍ତା ନା କ'ଣ! ଏଡ଼େ ବଡ଼ ଶାବଳଟାକୁ ନିଜେ ତ ଉଠେଇ ପାରି ନ ଥାନ୍ତା!

ଏତିକିବେଳେ ମାମୁ ଡାକ ଛାଡ଼ିଲେ-''ତପୁ, ସେ ମହାତ୍ମାଗାନ୍ଧୀ ରୁପାଟଙ୍କାଟା ଆଣିଲୁ । ତୋ' ବୋଉକୁ ଦେଖେଇବା ।''

ସେ ଏବେ କରିବ କ'ଣ ? ଟଙ୍କାଟାକୁ ନେଇ ତ ମାଟିରେ ଗାତ ଖୋଳି ପୋତି ଦେଇଛି । ଆଣିବ କେମିତି? ତା'କୁ ଆଉ ବୁଦ୍ଧିବାଟ ଦିଶିଲାନି ।

କଥା ହେଲା, ଘରକୁ ମାମୁ ଆସିଥାନ୍ତି ବୁଲି । ସେ ଦୂର ସହରରେ ଚାକିରି କରନ୍ତି । ଆସିଲାବେଳେ ଏଥର ତପୁ ଲାଗି ଚକ୍‌ଲେଟ୍ ସହ ଆଣିଥିଲେ ଗୋଟେ ବଡ଼ ରୁପା ଟଙ୍କା ।





Digitized by srujanika@gmail.com

ସେଥିରେ ମହାତ୍ମାଗାନ୍ଧୀଙ୍କର ମୁଣ୍ଡର ଛବି ଥିଲା । ଗାନ୍ଧୀ ଜୟନ୍ତୀ ସକାଶେ ସରକାର ଏ ବର୍ଷ ବିଶେଷ ଉତ୍ସବ କରି ବାହାର କରିଥିଲେ ମୁଦ୍ରାଟି । ମାମୁ କହିଥିଲେ- ''ତୋର ଏଇଟା ଖାଣ୍ଟି ରୁପାରେ ତିଆରି । ଖୁବ୍ ମୂଲ୍ୟବାନ୍ ।''

ରୁପାଟଙ୍କାଟା ପାଇବାକ୍ଷଣି ତପୁ ମନରେ ଗୋଟେ ଖିଆଲ ପଶିଲା । ଗାଈଆଳ ପିଲା ମଞ୍ଜି ପୋତିବା ପରି ସେ କିଆଁ ଟଙ୍କା ଫଳେଇ ପାରିବନି? ରାତି ସାରା ସେ ସେଇ ସପନ ଦେଖିଲା । ଗୁଡ଼ାଏ ଟଙ୍କା ଫଳିଚି ଗଛରେ । ଶାଗୁଆ ପତ୍ର ଗହଳରେ ରୁପେଲି ଟଙ୍କା, ଚକ୍‌ଚକ୍ କରୁଚି । ବାଃ କେଡ଼େ ବଢ଼ିଆ ଦିଶୁଚି!

ତପୁ ତୃତୀୟ ଶ୍ରେଣୀରେ ପଢ଼ୁଚି । ପରୀକ୍ଷା ଫଳ ବାହାରିଲେ, ଏଇ ଚତୁର୍ଥକୁ ଯିବ ।

ପୁଣି ଥରେ ଡାକ ଛାଡ଼ିଲେ ମାମୁ ।

ତପୁ ଧଡ଼ପଡ଼ ହୋଇ ଦଉଡ଼ିଲା । ଏଣେ ମନରେ ଭୟ, ମାମୁ କାଳେ ରାଗିବେ । ସେ ଠିଆ ହୋଇଥିଲେ ବୋଉ ପାଖରେ । ତପୁ କହିଲା- ''ଟଙ୍କାଟା ମୁଁ ଆଣିପାରୁନି । ତମେ ଆସ ଆଣିବ ।'' ବାଡ଼ିପଟକୁ ଆସିବାରୁ ସେ ତାଙ୍କୁ ସବୁକଥା କହିଗଲା । ମାମୁ ହସିଲେ ହୋ' ହୋ' ହୋଇ । ସେଇଠୁ ନିଜେ ଖୋଳି ବାହାର କରି ଆଣିଲେ ରୁପାଟଙ୍କାଟା ।

ତପୁର ମୁହଁଟା ଶୁଖି, ଗିଲ ପରି ହୋଇଗଲା ।

ମାମୁ ଗେହ୍ଲେଇ କହିଲେ- ''ନାଇଁରେ, ମାଟିରେ ମଞ୍ଜି ପୋତିଲେ ଗଛ ଉଠିବ, ଟଙ୍କା ନୁହଁ । କଇଁ ମୁଞ୍ଜା ପଙ୍କରେ ବଢ଼େ, ବିଲ ହୁଡ଼ାରେ କି ନଈ ବାଲିରେ କଇଁ ଉଠିବ? ଟଙ୍କା ପୋତିବା ପାଇଁ ଅଲଗା ଜାଗା ଅଛି ।''

ତପୁ କ'ଣ ଆଉ କହିବ? ଖାଲି ମୁଣ୍ଡ ଆଉଁଶିଲା ।

ତା'ପରଦନି ମାମୁ ତାକୁ ନେଇଗଲେ ଗୋଟେ ବ୍ୟାଙ୍କ୍‌କୁ । ସେଠି ତା' ନାଁରେ ଗୋଟେ ଜମାଖାତା ଖୋଲିଦେଲେ । କହିଲେ- ''ଦେଖ୍, ଏ ରୁପା ମୁଦ୍ରାଟିର ମୂଲ୍ୟ ହେଉଛି ଶହେଟଙ୍କା । ସେଇ ଶହେ ଟଙ୍କାକୁ ମୁଁ ତୋ' ନାଁରେ ବ୍ୟାଙ୍କ୍ ଖାତା ଖୋଲି ପୋତି ଦେଇଛି । ତୁ ଛୋଟପିଲା, ତେଣୁ ତୋ' ନାଁ ସହ ବାପାଙ୍କ ନାଁ ବି ଖାତାରେ ରହିବ । ଆମେ ଆଜି ପୋତିଲେ, ଛଅମାସ ବେଳକୁ ଟଙ୍କା ଫଳି ଶହେରୁ ଅଧିକ ହୋଇଯିବ ।''

ସତକୁ ସତ ଛଅମାସ ପରେ ବାପାଙ୍କ ସାଙ୍ଗରେ ତପୁ ଯାଇ ଯେତେବେଳେ ପଚାରିଲା, ତା' ଶହେଟଙ୍କାଟା ଶହେଦୁଇ ହୋଇଯାଇଚି । ବ୍ୟାଙ୍କ୍‌ବାବୁ କହିଲେ- ''ତୁମ ଟଙ୍କା ଗଛରେ ଯେଉଁ ଫଳ ଫଳିଚି, ତାକୁ ଆମେ କହୁ ସୁଧ । ସେଇଟା ଏବେ ଦୁଇ ହୋଇଛି, ଆଉ ଛଅମାସ ପରେ ଚାରି ହେବ । ଏଇଭଳି ତୁମ ଗଛଟା ଧୀରେ ଧୀରେ ବଢ଼ିବ ।''

ହସିଦେଲା ତପୁ । ମନେ ମନେ ଭାବିଲା, ଯା'ହଉ ଫଳିଲା ତ!''



Digitized by srujanika@gmail.com

# ହୁଲୁହୁଲୁ ଅସୁର ଓ ଅନ୍ୟାନ୍ୟ କାହାଣୀ




ISBN 978-81-89436-68-1



ସମସାମୟିକ ଓଡ଼ିଆ-ସାହିତ୍ୟ-ଜଗତରେ ଦାଶ ବେନହୁର (୧୯୫୩) ଏକ ପରିଚିତ ନାମ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସେ ନିଆରା ସୃଷ୍ଟିଶୀଳତାର ପରିଚୟ ଦେଇଛନ୍ତି । କ୍ଷୁଦ୍ରଗଳ୍ପ, କବିତା, ପ୍ରବନ୍ଧ ଓ ଅନୁବାଦ ଆଦିରେ ମୌଳିକ ଦୃଷ୍ଟିକୋଣ ତାଙ୍କ ରଚନା-ସମ୍ଭାରର ପ୍ରଧାନ ବିଶେଷତ୍ୱ । ପୁଣି ଭାଷାରେ ସରଳତା ଓ ଭାବରେ ଅନ୍ତରଙ୍ଗତା ତାଙ୍କ ସୃଷ୍ଟିର ସବୁଠାରୁ ଅଧିକ ଉଲ୍ଲେଖନୀୟ ଦିଗ । ଶିଶୁସାହିତ୍ୟରେ ଶିକ୍ଷା ଅପେକ୍ଷା ଆନନ୍ଦ ପ୍ରଦାନ ହିଁ ତାଙ୍କ ଲେଖାର ପ୍ରଧାନ ଆଭିମୁଖ୍ୟ। ପିଲାଙ୍କ ପାଇଁ ଅନେକ ଗୀତ, ଗପ, ପହଳି ଓ ପ୍ରବନ୍ଧ ରଚନାକରି ସେ ଅଶେଷ ପାଠକୀୟ ସ୍ୱୀକୃତି ଲାଭ କରିବା ସହ ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ବିଜ୍ଞାନ ଏକାଡେମୀ ଓ ଏନ୍.ସି.ଇ.ଆର୍.ଟି.ଭଳି ଅନେକ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

ଏହି ଗପ ସଂକଳନରେ ରହିଛି ଦଶଗୋଟି ମନଲୋଭା କାହାଣୀ । ଛୋଟ ପିଲାଙ୍କର ମନକୁ ଛୁଇଁଲା ଭଳି ଉଭୟ ନିତିଦିନିଆ କଥା ଓ କଳ୍ପନାକୁ ମିଶାଇ ଗପଗୁଡ଼ିକ ଲିଖିତ । ବିଶେଷକରି ବାର, ତେର ବର୍ଷ ତଳର ପିଲାଙ୍କପାଇଁ ଏସବୁ ଖୁବ୍ ଉପଯୋଗୀ ।

Digitized by srujanika@gmail.com